# କୋଟି କୋଟି
# ପରିବହନ କର୍ମଚାରୀଙ୍କ
# ଭବିଷ୍ୟତ ବିପଦ ମଧ୍ୟରେ










**ଆସନ୍ତୁ ନୂଆ ସଡ଼କ ପରିବହନ ବିଲ୍ -୨୦୧୫**
**ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା**

# ନିବେଦନ

ଓଡ଼ିଶାର ପ୍ରିୟ ପରିବହନ ଶ୍ରମିକ ଭାଇମାନେ,

ଅଲ୍ ଓଡ଼ିଶା ରୋଡ୍ ଟ୍ରାନ୍ସପୋର୍ଟ ୱାର୍କର୍ସ ଫେଡେରେସନ ତରଫରୁ ଏହି ପୁସ୍ତିକାଟି ଆପଣମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରୁଛୁ। ଆମ ରାଜ୍ୟର ପରିବହନ ଶ୍ରମିକମାନେ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ଅଛନ୍ତି । କାମ କରିବାର ନିର୍ଦ୍ଦିଷ୍ଟ ସମୟ ନିର୍ଦ୍ଧାରଣ ନାହିଁ । ଚାକିରିର ଗ୍ୟାରେଣ୍ଟି ନାହିଁ, ମଜୁରୀ ଉପଯୁକ୍ତ ପରିମାଣରେ ମିଳେନାହିଁ। ପୁଲିସ, ଗୁଣ୍ଡା, ମାଲିକ ମାନଙ୍କ ଦୌରାତ୍ମ୍ୟର ସୀମା ନାହିଁ । ଏ ଦୁଃଖ ଉପରେ କେନ୍ଦ୍ର ସରକାର ଯେଉଁ ଆଇନ୍ ଆଣିବାକୁ ଯାଉଛନ୍ତି, ତାହା ଆମ ବେକରେ ଫାଶି ଦଉଡି ଭଳି ହେବ। କଥା କଥାକେ ଜୋରିମାନା ଆଉ ଜେଲ୍।

ଆପଣମାନେ ଏ ବହିଟି ପଢ଼ନ୍ତୁ। ବହିଟିରେ ସବୁକଥା ଲେଖା ହୋଇନାହିଁ। ଏ ବିଷୟରେ ଆଲୋଚନା କରନ୍ତୁ। ଶ୍ରମିକ ବିରୋଧୀ ଆଇନକୁ ପ୍ରତ୍ୟାଖ୍ୟାନ କରିବା ପାଇଁ ଏକତ୍ରିତ ହୁଅନ୍ତୁ। ଯଦି ଆମ ରାଜ୍ୟ ସମେତ ସାରା ଦେଶର ପରିବହନ ଶ୍ରମିକମାନେ ଏକଜୁଟ ହୋଇ ଏହି ଆଇନ୍ ବିରୋଧରେ ଆନ୍ଦୋଳନର ରାସ୍ତାକୁ ଯିବେ, ତେବେ ଏ ଆଇନ୍ ପ୍ରତ୍ୟାହାର ହୋଇପାରିବ।

ବିଦେଶୀ କମ୍ପାନୀମାନଙ୍କ ସ୍ୱାର୍ଥ ପାଇଁ ଓ ମୋଟର କାରଖାନା ମାଲିକ ତଥା ବଡ଼ ବଡ଼ ବ୍ୟବସାୟୀଙ୍କ ଲାଭ ପାଇଁ ଏ ଆଇନ୍ ଅଣାଯାଇଛି।

ସୁତରାଂ ଆମ ସମସ୍ତଙ୍କର ସୁରକ୍ଷା ପାଇଁ ଏ ଆଇନ୍ ରଦ୍ଦ ହେବା ଦରକାର। ସାରା ଦେଶବ୍ୟାପୀ ଏ ଆଇନ ବିରୋଧରେ ଅଭିଯାନ ଆରମ୍ଭ ହୋଇଛି ଓ ଏ ଅଭିଯାନକୁ ସଫଳ କରିବାକୁ ଅନୁରୋଧ।



# କୋଟି କୋଟି ପରିବହନ କର୍ମଚାରୀଙ୍କ ଭବିଷ୍ୟତ ବିପଦ ମଧ୍ୟରେ

ଆପଣମାନେ ଜାଣିଛନ୍ତି କି ? କେନ୍ଦ୍ର ସରକାର ଏକ ନୂଆ ସଡ଼କ ପରିବହନ ଏବଂ ସୁରକ୍ଷା ବିଲ୍ -୨୦୧୫, ମୋଟର ଭେଇକେଲ ଆକ୍ଟ ଆଇନ୍ ପରିବର୍ତ୍ତେ ଆଣୁଛନ୍ତି । ଏହି ବିଲ୍ ସମସ୍ତ ପରିବହନ ବିଭାଗ ପାଇଁ ଆତ୍ମଘାତୀ ବିଲ୍ ଏବଂ ଏହା କର୍ପୋରେଟ ଜଗତକୁ କେବଳ ପ୍ରୋତ୍ସାହନ ଯୋଗାଇବ । ଏହି ବିଲ୍‌ଟି ଆଇନରେ ପରିଣତ ହେଲେ ପ୍ରତ୍ୟେକ ଡ୍ରାଇଭର ଯଥା- ଆଟୋ, ଟାକ୍ସି, ବସ୍, ଟ୍ରକ୍, ମାଲବାହୀ ଚାଳକମାନଙ୍କର ଯୋରିମାନା ପରିମାଣ ଏକକାଳୀନ ୨୦୦୦ଟଙ୍କାରୁ (ତିନିଲକ୍ଷ) ୩,୦୦,୦୦୦ ଏବଂ ଜେଲ ଦଣ୍ଡ ଦିଆଯିବ । ଏହି ବିଲ୍‌ଟିକୁ ବିରୋଧ କରି ପରିବହନ ଶ୍ରମିକମାନେ ୨୦୧୫ ସେପ୍ଟେମ୍ବର ୨ତାରିଖ ସାଧାରଣ ଧର୍ମଘଟରେ ଯୋଗ ଦେଇଥିଲେ ।

କେନ୍ଦ୍ର ସରକାରଙ୍କ ଦ୍ୱାରା ଆହୁତ ସଡ଼କ ପରିବହନ ଏବଂ ସୁରକ୍ଷାବିଲ୍ ୨୦୧୫ ରାଜ୍ୟସରକାର ମାନଙ୍କର ଅଧିକାରକୁ ଖର୍ବ କରିବା ସହ MVACT 1988 ରାଜ୍ୟ ପରିବହନ ବିଭାଗର ଅନୁବଂଧିତ ଆଇନକୁ ସ୍ଥାଣୁ କରିବ । ଏହି ବିଲ୍‌ଟିକୁ କେନ୍ଦ୍ର ସରକାରି ଦଳର କିଛି ବରିଷ୍ଠ ନେତା ଅବଶ୍ୟ ବିରୋଧ କରିଛନ୍ତି । ବର୍ତ୍ତମାନ ଏଭଳି ପରିସ୍ଥିତିରେ କିଛି ସଂଶୋଧନ ଏହି ବିଲ୍‌ରେ ଉଭୟ ଗୃହରେ ଅନୁମୋଦନ ଲାଭକରିଛି । କିନ୍ତୁ ଏହି ନୂତନ ବିଲ୍‌ରେ ଯେକୌଣସି ଆମେଣ୍ଡମେଣ୍ଟ (ପ୍ରସ୍ତାବ) ଆଣିବାର କ୍ଷମତା କେନ୍ଦ୍ରିୟ ପରିଚାରକଙ୍କ ଅଧିନରେ ଅଛି ।

ଏହି ନୂଆ ଆଇନ୍ ବଳରେ କଣ୍ଡକ୍ଟର ପଦବୀକୁ ସଂପୂର୍ଣ୍ଣ ଉଚ୍ଛେଦ କରା ଯାଇଛି । MVACT 1988 ବଳରେ ଦିଆଯାଇଥିବା କଣ୍ଡକ୍ଟର ଲାଇସେନସ୍ ନବୀକରଣକୁ ସଂପୂର୍ଣ୍ଣ ମାତ୍ରାରେ ବନ୍ଦ କରି ଦିଆଯାଇଛି । ଯାହା ଫଳରେ ୩ ଲକ୍ଷ କଣ୍ଡକ୍ଟର ମାନଙ୍କର ଭବିଷ୍ୟତ ଅନ୍ଧକାର ମଧ୍ୟକୁ ଯାଉଛି । ଏହି ନୂଆ ଆଇନ୍ ଫଳରେ ଦାୟିତ୍ୱଭାର (Undertaking) ଶବ୍ଦଟି ଉଚ୍ଛେଦ ହେଉଛି । ଏହାର ଅର୍ଥ ହେଉଛି ସମସ୍ତ ପରିବହନ ବିଭାଗ ଗୁଡ଼ିକ ବନ୍ଦ ହୋଇଯିବ । ଏହା ଜାଣିବାର କଥା ମଧ୍ୟପ୍ରଦେଶକୁ ମିଶାଇ ଅନ୍ୟରାଜ୍ୟ ଗୁଡ଼ିକ ରେ Undertaking ଥିଲା ତାହାର ବି ଅନ୍ତ ଘଟିବ । ଏହି ବିଲ୍ ବା ଆଇନ୍‌ର ବଳୟ ମଧ୍ୟରେ ଶଗଡ଼ଗାଡି, ହାତଟଣା ଶଗଡ଼ ମଧ୍ୟ ଅନ୍ତର୍ଭୁକ୍ତ । ଏହା ଅର୍ଥ ହେଉଛି ଯେ

କୌଣସି ପ୍ରକାର ଯାନ ହେଲେ ମଧ ତାହା କେନ୍ଦ୍ରିୟ ଅଧିକାରୀ ଙ୍କ ଦ୍ୱାରା ଅନୁମୋଦିତ ହେବା ଦରକାର। ଟ୍ରାଫିକ୍ ନିୟମଭଙ୍ଗ ଆଇନ୍ ବଳରେ ଦଣ୍ଡ ବିଧାନ ଅତ୍ୟନ୍ତ କଠୋର କରାଯାଇଛି।

ଏହି ବିଲ୍‌ଟି ଆସିବା ଫଳରେ ଲକ୍ଷଲକ୍ଷ ପରିବହନ କର୍ମଚାରୀ କର୍ମ ହରାଇବା ଫଳରେ ଅତ୍ୟଧିକ ପରିମାଣରେ ମୋଟର ଯାନ ଗୁଡ଼ିକ ରାସ୍ତାରେ ଛିଡ଼ାହେବ। ଦେଶତମାମ ୬୨ଟି ପରିବହନ ସଂଗଠନ ଗୁଡ଼ିକରେ ସାତଲକ୍ଷ ପଚାଶ ହଜାର କର୍ମଚାରୀ କାମ ହରାଇବା ସହ ତାଙ୍କର ପରିବାର ଗୁଡ଼ିକ ମଧ ଏଥିରେ ପ୍ରଭାବିତ ହେବେ। ଆଡ଼ମିନିଷ୍ଟ୍ରେଟିଭ୍ କର୍ମଚାରୀଙ୍କ ସଂଖ୍ୟା କମ୍ ଥିବାରୁ ଗାଡିର ପଞ୍ଜିକରଣ, ପରମିଟ୍ ଇସ୍ୟୁ, ଡ୍ରାଇଭିଙ୍ଗ ଲାଇସେନ୍‌ସ ଇତ୍ୟାଦିକୁ ବେସରକାରୀ ସଂସ୍ଥା ଦ୍ୱାରା କରାଇବେ। ଏହି ନୁଆ ଆଇନ୍ ବଳରେ ନୂତନ ଲାଇସେନ୍‌ସ କରିବା, ନୁଆ ଗାଡି କିଣିବା ଦଣ୍ଡିତ ବ୍ୟକ୍ତି ବିଶେଷ ଙ୍କ ପାଖରେ କଷ୍ଟସାଧ ହେବ। ରୁଟ୍ ପରିମିଟ୍ ପାଇବା ପାଇଁ ମଧ ଟେଣ୍ଡର ନିୟମକୁ ଲାଗୁ କରାଯିବ, ଯାହା ଫଳରେ କର୍ପୋରେଟ ସଂସ୍ଥାଗୁଡିକର ଅଗ୍ରଣୀ ବେସରକାରୀ ସଂସ୍ଥା ଗୁଡିକ ଟୋଲ୍ ପ୍ଲାଜା ଗୁଡ଼ିକର ଆଇନ୍‌କୁ କାର୍ଯ୍ୟକାରୀ କରିବାକୁ କ୍ଷମତା ପ୍ରାପ୍ତ ହେବ। ଯାହାକି ଅତ୍ୟନ୍ତ ବିପଦଜନକ କଥା। ଦେଶରେ ୯୦ ଭଗ ପରିବହନ କର୍ମଚାରୀମାନେ ଦିନରେ ଅତ୍ୟନ୍ତ କଠିନ କାର୍ଯ୍ୟ କରନ୍ତି, କିନ୍ତୁ ସେମାନଙ୍କ ପାଇଁ କୌଣସି ସୁବିଧା ସୁଯୋଗ ଯେଗାଇ ଦିଆଯାଉନଥିବା ବେଳେ କାମ କରିବା, ସଠିକ୍ ପରିବେଶ, ଚିକିତ୍ସା ସୁବିଧା, ପ୍ରୋଭିଡ଼େଣ୍ଟ ଫଣ୍ଡ, କର୍ମଚାରୀ ବୀମା ବ୍ୟବସ୍ଥା ଆଦିର ସୁବିଧା ମିଳେନାହିଁ। ଆମର ଦାବୀ ହେଉଛି ଭି.ଭି. ଗିରି ସଂସ୍ଥା, ଦ୍ୱାରା ଅନୁମୋଦନ ଲାଭ କରିଥିବା ପରାମର୍ଶକୁ କାର୍ଯ୍ୟକାରୀ କରାଇବା, ଏହି ରିପୋର୍ଟରେ ଶ୍ରମିକ ମାନଙ୍କର ଚାକିରି ଏବଂ ସୁରକ୍ଷା ଏବଂ ସେମାନଙ୍କର ବିକାଶ କେନ୍ଦ୍ର ଓ ରାଜ୍ୟର ଦାୟିତ୍ୱ ହୋଇ ରହିବା ଦରକାର।

ମେ ମାସ, ୨୬, ୨୦୧୫ରେ ୧୨୦୦ ପ୍ରତିନିଧି ସମଗ୍ର ଦେଶରୁ, ସମସ୍ତ ପରିବହନ ବିଭାଗ ଏବଂ ଫେଡ଼େରେସନ କର୍ମଚାରୀମାନେ ଦିଲ୍ଲୀଠାରେ ଅନୁଷ୍ଠିତ ବୈଠକରେ ଯୋଗ ଦେଇଥିଲେ। ଏହି ମିଟିଙ୍ଗ୍‌ରେ ପ୍ରତିନିଧିମାନେ ଏହି ପ୍ରସଙ୍ଗ ଉପରେ ଆଲୋଚନା କରିଥିଲେ। ବର୍ତ୍ତମାନ ସରକାର ଶ୍ରମିକ ଶ୍ରେଣୀ ତଥା ସାଧାରଣ ମଣିଷର ସ୍ୱାର୍ଥ ପରିବର୍ତ୍ତେ କର୍ପୋରେଟ ସଂସ୍ଥାର ସ୍ୱାର୍ଥ ପାଇଁ ପ୍ରଚାରକ ସାଜିବା ସହ କାର୍ଯ୍ୟକରୁଛନ୍ତି। ଯାହାର ପ୍ରମାଣ ହେଉଛି କେନ୍ଦ୍ର ସରକାର ଦେଶରେ ରେଳବାଇ, ପ୍ରତିରକ୍ଷା, ଅର୍ଥ କ୍ଷେତ୍ରରେ ପୁଞ୍ଜିନିବେଶ କରିବା ପାଇଁ ବିଦେଶୀ ପୁଞ୍ଜି ନିବେଶକଙ୍କୁ ନିମନ୍ତ୍ରଣ କରୁଛନ୍ତି। କେନ୍ଦ୍ରସରକାର ପରିବହନ ବିଭାଗକୁ କର୍ପୋରେଟ ସଂସ୍ଥା ହାତକୁ ଟେକି ଦେଉଥିବା ବେଳେ ଦେଶରେ କୃଷକ

ମାନଙ୍କ ଜୀବନ ଜିବିକା ଧ୍ୱଂସ ହୋଇ ଚାଲିଛି। ଫଳରେ ପ୍ରତ୍ୟେକ ଦିନ ଚାଷୀ ଆତ୍ମହତ୍ୟା କରୁଛି।

ମୋଟା ମୋଟି ଭାବେ କେନ୍ଦ୍ରସରକାରଙ୍କର ଦ୍ୱାରା ଆହୁତ ଏହି ବିଲ୍ କାର୍ଯ୍ୟକାରୀ ହେଲେ, ପରିବହନ ସହ ସଂଶ୍ଳିଷ୍ଟ ବିଭାଗ ଗୁଡ଼ିକ ପ୍ରାଇଭେଟ୍ ସଂସ୍ଥା ହାତକୁ ଯିବ। ଏହି ବିଭାଗ ଅଧିନରେ କାର୍ଯ୍ୟରତ କର୍ମଚାରୀଙ୍କର ଅଧିକାରକୁ ହରଣ କରାଯିବାର ବାଟ ଫିଟିବ।

କେନ୍ଦ୍ରସରକାର ଏହି ବିଲ୍ ଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ଯାଇ ଶ୍ରମ ଆଇନ୍‌କୁ ଧ୍ୱଂସ କରିବା ସହ ଶ୍ରମିକ ସଂଗଠନ ଗୁଡ଼ିକ କ୍ଷମତାକୁ ଶକ୍ତିହୀନ କରିବାକୁ ଉଦ୍ୟମ କରୁଛନ୍ତି। ଶ୍ରମିକର ସ୍ୱାର୍ଥ ପରିବର୍ତ୍ତେ କେନ୍ଦ୍ରସରକାର ପରିଶ୍ରମରତ ଶ୍ରମିକ ମାନଙ୍କୁ ଦାସତ୍ୱରେ ପରିଣତ କରୁଛନ୍ତି। ସେମାନଙ୍କର ପ୍ରୋଭିଡ଼େଣ୍ଡ ଫଣ୍ଡ, କର୍ମଚାରୀ ବୀମା ବ୍ୟବସ୍ଥା କୁ ସଙ୍କୁଚିତ କରିବା ପାଇଁ ଉଦ୍ୟମ ଦେଉଛନ୍ତି। କେନ୍ଦ୍ର ସରକାର, ଗଣମାଧ୍ୟମକୁ ପ୍ରଚାର ସର୍ବସ୍ୱ କରି ବ୍ୟବହାର କରୁଥିବା ବେଳେ ସାଧାରଣ ଲୋକଙ୍କର ଦୈନନ୍ଦିନ ଜୀବନ ଜିବିକା ପାଇଁ ଆବଶ୍ୟକ ଖାଦ୍ୟ ସାମଗ୍ରୀର ଦର ନିୟନ୍ତ୍ରଣ କରିବା ପାଇଁ କୌଣସି ଉଦ୍ୟମ କରୁନାହାଁନ୍ତି।

କେନ୍ଦ୍ରିୟ ସଡ଼କ ପରିବହନ ଏବଂ ଜାତୀୟ ରାଜପଥ ବିଭାଗର ମୋଟର ଭେଇକେଲ ଆକ୍ଟ ୧୯୮୮ କୁ ପଙ୍ଗୁ କରିବାକୁ ଉଦ୍ୟମ କରିବା ସହ ୨୦୧୪ ନୂଆ ଆଇନ୍ ଆଣୁଛନ୍ତି। ଏହି ବିଲ୍‌ର ସମସ୍ତ ତଥ୍ୟ ଅକ୍ଟୋବର ୨୦୧୪ ପ୍ରକାଶିତ ହୋଇଛି, ପୁନଃର୍ବାର କିଛି ପରିବର୍ତ୍ତନ ସହ ସେଗୁଡ଼ିକୁ ପ୍ରକାଶିତ କରିଛନ୍ତି।

## କେନ୍ଦ୍ର ଆଇନ୍‌ର ପରିବର୍ତ୍ତନ ପାଇଁ ବିଦେଶୀ ନିବେଶକ ମାନଙ୍କ ଦ୍ୱାରା ସରକାର ପ୍ରଭାବିତ-

ମୋଦି ସରକାର ଆମେରିକା, କାନାଡା, ସିଙ୍ଗାପୁର, ଜାପାନ, ଜର୍ମାନୀ ଏବଂ ବ୍ରିଟିଶ୍ ଆଦିଦେଶ ଗୁଡ଼ିକର ସହାୟତାରେ ଏହି ବିଲ୍‌କୁ ପ୍ରସ୍ତୁତ କରିଛନ୍ତି। ଏହି ବିଲ୍‌ଟି ଦେଶର ଆଭ୍ୟନ୍ତରୀଣ ଅବସ୍ଥା ଜନଗଣଙ୍କ ସ୍ୱାର୍ଥ ଓ ଆବଶ୍ୟକତାକୁ ନବୁଝି ପ୍ରସ୍ତୁତ କରାଯାଇଛି। ଆମ ଦେଶ ୧୨୪ କୋଟି ଲୋକଙ୍କର ଦେଶ। ଏହାର ପାଣିପାଗ, ରାସ୍ତାଘାଟ, ସଂପୂର୍ଣ୍ଣ ଭିନ୍ନ। କେଉଁଠି ଥଣ୍ଡା, ଉଚ୍ଚପର୍ବତମାଳା, ଘାଟି ଓ ଆଉ କେଉଁଠାରେ ମରୁଭୂମି ଓ ଗୁଡ଼ିଏ ଉପଦ୍ୱିପରେ ଭରପୁର। ୨୦୧୪ ମସିହାର ଏହି ବିଲ୍‌ରୁ ଯାହା ବୁଝାପଡେ, ଏହି ବିଲ୍‌ଟି ସଂପୂର୍ଣ୍ଣ ବିକାଶଶିଳ ଦେଶ ଗୁଡ଼ିକରେ ପ୍ରଣିତ ଆଇନ୍‌ର ଅବିକଳ ନକଲ। ଏଥିରେ ଆମ ଦେଶର ଅବସ୍ଥାକୁ ଆଦୌ ବିଚାରକୁ ନିଆଯାଇ ନାହିଁ।

ତେଣୁ ଏହି ନୂତନ ବିଲ୍ ବିରୁଦ୍ଧରେ ଦେଶରେ ସମସ୍ତ ଶ୍ରମିକ ସଂଗଠନ ଗୁଡ଼ିକ ନିଜର ସ୍ୱର ଉତ୍ତୋଳନ କରିବା ଦରକାର।

ଏହି ବିଲ୍‌ଟି ସଂପୂର୍ଣ୍ଣ ସଙ୍କେତ ଦେଉଛି ସରକାର ଦେଶର ପରିବହନ କ୍ଷେତ୍ରରେ କାର୍ଯ୍ୟରତ ଶ୍ରମିକ ମାନଙ୍କର ଜୀବନ ଜୀବିକାକୁ କର୍ପୋରେଟ ସଂସ୍ଥା ହାତକୁ ଟେକି ଦେଉଛନ୍ତି। ଏହି ବିଲ୍‌କୁ ସମସ୍ତ ଟ୍ରାନସପୋର୍ଟ ୟୁନିୟନ ଏବଂ ସର୍ବଭାରତୀୟ ଟ୍ରାନ୍‌ସପୋର୍ଟ ଫେଡ଼େରେସନ ମିଳିତ ଭାବରେ, ପରିବହନ ବିଭାଗ ଉପରେ ଏହାର କୁ ପ୍ରଭାବ ଏବଂ ପରିବହନ ଉପରେ ନିର୍ଭରଶୀଳ ସାଧାରଣ ଜନତାଙ୍କ ଉପରେ ପଡୁଥିବା ପ୍ରତ୍ୟକ୍ଷ ଏବଂ ପରୋକ୍ଷ ପ୍ରଭାବ ଉପରେ, ଦାବି ଉପସ୍ଥାପନ କରାଯାଉଛି। ଏହି ବିଲ୍ ଉପରେ ଆଲୋଚନା କରିବା ପାଇଁ ଦାବୀ ହୋଇଛି କିନ୍ତୁ ଅଦ୍ୟାବଧି ସରକାରଙ୍କ ତରଫରୁ ଆଲୋଚନା ପାଇଁ କୌଣସି ସଙ୍କେତ ମିଳି ନାହିଁ। ଏହାର ପ୍ରତିବାଦରେ ସମସ୍ତ ଟ୍ରାନ୍‌ସପୋଟ ୟୁନିୟନ ତରଫରୁ ୧୩ଟି ରାଜ୍ୟରେ ଗଠିତ ଫୋରମ ତରଫରୁ ୩୧ ଏପ୍ରିଲ୍ ୨୦୧୫ରେ ଏକ ଦିନିକିଆ ଧର୍ମଘଟ ଡାକରା ଦିଆଯାଇଥିଲା। ଏହି ଷ୍ଟ୍ରାଇକ୍‌କୁ ସମର୍ଥନ କରି ରାସ୍ତାରେ ବସ, ଟ୍ରକ, ଅଟୋରିକ୍ସା, କାର, ସ୍କୁଲବସ୍, ପାର୍ଟ୍‌ସ ଦୋକାନ, ଗ୍ୟାରେଜ ଓ୍ୱର୍କସପ ଚାଲିନଥିଲା ଯାହା ଫଳରେ ଧର୍ମଘଟ ବନ୍ଦରେ ପରିଣତ ହୋଇଥିଲା। ଅନେକ ବିଭାଗ ତରଫରୁ କଳାବ୍ୟାଚ୍ ପରିଧାନ, ଶୋଭାଯାତ୍ରା ସଂଗଠିତ କରି ନିଜର ସମର୍ଥନ କରିଥିଲେ। ଯାହା ଫଳରେ କେନ୍ଦ୍ରସରକାରକୁ ଏହା ଏକ ଧକ୍କାଦେଇଛି।

## ପରିବହନ ଓ ନିରାପତ୍ତା ବିଲ୍ -୨୦୧୫ରେ କ'ଣ ପରିବର୍ତ୍ତନ ହୋଇଛି

ଆଜକୁ ପଚାଶ ବର୍ଷ ହେବ ପ୍ରଚଳିତ ୧୯୩୭ ମୋଟର ଯାନ ଆଇନ୍ ଏବଂ ୧୯୮୮ ଆଇନ୍ ପାର୍ଲିଆମେଣ୍ଟରେ ଉଭୟ ଗୃହରେ ଅନୁମୋଦିତ ହୋଇ କାର୍ଯ୍ୟକାରୀ ହୋଇଆସୁଛି। ପରିବର୍ତ୍ତିତ ଆଇନ୍ ୧୯୮୯, ଜୁଲାଇ ୧ ଠାରୁ କାର୍ଯ୍ୟକାରୀ ହେଉଥିଲା। କେନ୍ଦ୍ରସରକାର ଏହି ୧୯୮୮ ଓ ୨୦୧୫ ସୁରକ୍ଷା ବିଲ୍ ନାମରେ ଏହାକୁ ପରିବର୍ତ୍ତନ କରିବାକୁ ଉଦ୍ୟମ ରତ। ଯାହାର ମୂଳ ଉଦ୍ଦେଶ୍ୟ ହେଉଛି ରାଜ୍ୟସରକାରଙ୍କ କ୍ଷମତାକୁ କେନ୍ଦ୍ର ଦଖଲକରି କର୍ପୋରେଟ ସଂସ୍ଥା ହାତକୁ ଦେଇ ସେମାନଙ୍କର ସୁବିଧା କରାଇବ। ଯାହା ଫଳରେ ଲକ୍ଷ ଲକ୍ଷ ଶ୍ରମିକ ତାଙ୍କର କାମ ହରାଇବେ।

୧. ଏହି ଆଇନ୍ ଅନୁସାରେ ସାଧାରଣ ଜନତାଙ୍କ ବିରୋଧରେ ମଧ୍ୟ ଏ ଆଇନ୍ କାମ କରିବ। ଏହି ପରିବର୍ତ୍ତନ ଗୁଡ଼ିକୁ କାର୍ଯ୍ୟକାରୀ କରିବା ବେଳେ ସଠିକଭାବେ ଲକ୍ଷ ଲକ୍ଷ ଶ୍ରମିକଙ୍କ କଥା ଅନୁଧ୍ୟାନ କରିବା ପରିବର୍ତ୍ତେ ମନମୁଖୀ ଭାବେ ବିକାଶ ଶୀଳ

ଦେଶର କର୍ପୋରେଟ ସଂସ୍ଥା ଗୁଡ଼ିକ ମାନଙ୍କ ଭଳି ଏକଚାଟିଆ ବ୍ୟବସାୟୀଙ୍କ ସ୍ୱାର୍ଥ ପ୍ରତି ଯତ୍ନ ନିଆଯାଇଛି। ବର୍ତ୍ତମାନ ପରିସ୍ଥିତିରେ ଅଟୋ ଏବଂ ଟ୍ୟାକ୍ସି ଗୁଡ଼ିକ ବହୁଲକ୍ଷ ଲୋକଙ୍କୁ ରୋଜଗାର ଏବଂ ନିଯୁକ୍ତିର ମୁଳଉତ୍ସ କିନ୍ତୁ ଏହି ଆଇନ୍ ବଳରେ ଅନେକ ନିଜର ଜୀବିକା ହରାଇବେ।

୨. ପରିବହନ ବ୍ୟବସ୍ଥାକୁ କର୍ପୋରେଟ ସେକ୍ଟର ହାତକୁ ହସ୍ତାନ୍ତର ହେବାକୁ ଯାଉଛି। ଯାହା ଫଳରେ ଗୁଡ଼ିଏ ପରିବର୍ତ୍ତନ ହେବ।

- Natinal Transport Authority-ଜାତୀୟ ପରିବହନ ଅଧିକାରୀ
- Public SafetyAuthority- ସର୍ବସାଧାରଣ ସୁରକ୍ଷା ଅଧିକାରୀ
- Public Transport Authority-ସର୍ବସଧାରଣ ପରିବହନ ଅଧିକାରୀ
- Unitied metro politian Authority- ମିଳିତ ମହାନଗର ଅଧିକାରୀ

୩. ବର୍ତ୍ତମାନ ପରିମିଟ, ଫିଟ୍‌ନେସ ସାର୍ଟିଫିକେଟ, ଡ୍ରାଇଭିଙ୍ଗ୍ ଲାଇସେନ୍ସ ମୋଟର ଯାନର ପଞ୍ଜିକରଣ ଯାହା ସରକାରୀ ବିଭାଗ ଦ୍ୱାରା ହେଉଥିଲା ତାହା କର୍ପୋରେଟ ସଂସ୍ଥା ହାତକୁ ଚାଲିଯିବ।

୪. ଯାନ ଗୁଡ଼ିକର କଳେବର ପରିବର୍ତ୍ତନ, ସ୍ପେୟାର ପାର୍ଟର ପରିବର୍ତ୍ତନ ପାଇଁ କମିଟି ଅଧିନରେ ମୁଖ୍ୟ ଅଧିକାରୀଙ୍କର ଅନୁମୋଦନ ବାଧତାମୁଳକ।

ଯାନ ଗୁଡ଼ିକର ସ୍ପେୟାର ପାର୍ଟସରେ ପରିବର୍ତ୍ତନ ଯଦି କୌଣସି ବିଶେଷଜ୍ଞଙ୍କ ଙ୍କ ଦ୍ୱାରା କରାଇ ନଥିବେ, ତାହେଲେ ବିଭାଗ କୌଣସି ଦାୟିତ୍ୱ ବହନ କରିବେ ନାହିଁ।

୫. ଟୋଲପ୍ଲାଜା ଗୁଡ଼ିକ ହାତରେ କ୍ଷମତା ବ୍ୟବହାରର ଫଳ:-

- ସମସ୍ତ ଆଇନ୍ ଓ ଖସଡା ଟୋଲପ୍ଲାଜା ଦ୍ୱାରା କାର୍ଯ୍ୟକାରୀ ହେବ।
- ଟୋଲପ୍ଲାଜା ପରିବହନ କ୍ଷେତ୍ରରେ ଓଭର ଲୋଡ଼୍‌କୁ ଯାଞ୍ଚ କରିବେ।
- ହେଲମେଟ୍ ବ୍ୟବହାର କରିବାର ଆଇନ୍ ସରକାରଙ୍କ ହାତରେ ରହିବ ନାହିଁ।

୬. ଆଇନ୍ ଉଲଘଂନ କଲେ ସ୍ୱତନ୍ତ୍ର ଦଣ୍ଡ ବ୍ୟବସ୍ଥା:-

- ଡ୍ରାଇଭିଙ୍ଗ୍ ଲାଇସେନସ୍ ଓ ମୋଟର ଯାନ ରେଜେର୍ଷ୍ଟସନ ପ୍ରଦାନ କ୍ଷେତ୍ରରେ କେନ୍ଦ୍ରସରକାର ସ୍ୱତନ୍ତ ବଣ୍ଡ ବା ନଂମ୍ବର ପ୍ରଦାନ କରିବେ।
- ଗାଡ଼ିର କଳେବର ପରିବର୍ତ୍ତନକୁ ଉଲଘଂନ କଲେ ୫ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଜୋରିମାନା।

ତ୍ରୁଟିଥିବା ଗାଡ଼ିକୁ ବ୍ୟବହାର କଲେ ୩ମାସ ପର୍ଯ୍ୟନ୍ତ ଜେଲ ସହ ଜୋରିମାନା ପରିମାଣ ଗାଡ଼ିଟିର ମୂଲ୍ୟ ଦେବାକୁ ହେବ।

ଗାଡି ମାଲିକଙ୍କ ବିନା ଅନୁମତିରେ ଗାଡି ଚଲାଇବା ୬ମାସ ଜେଲଦଣ୍ଡ ସହ ଟ୨୫୦୦ ଜୋରିମାନା।

ବିନା ରେଜିଷ୍ଟ୍ରେସନରେ ଗାଡି ଚଲାଇଲେ ୧୫୦୦ ଟଙ୍କାରୁ ୫୦,୦୦୦ଟଙ୍କା ଜୋରିମାନା।

- ୨ଟି ଲାଇସେନସ୍ ବ୍ୟବହାର କଲେ ୧ମାସ ଜେଲ ସହ ୧୦୦୦ଟଙ୍କା ଜୋରିମାନା।
- ଇନସୁରାନସ ନଥିବା ଗାଡି ବ୍ୟବହାର କଲେ ଟ୨୦୦୦ ଠାରୁ ୧ଲକ୍ଷ ପର୍ଯ୍ୟନ୍ତ ଜୋରିମାନା।
- ଚାଲାଣ ରିଜେକ୍ଟ ହୋଇଥିଲେ ୧୦.୦୦୦ଟଙ୍କା ଠାରୁ ୨୫,୦୦୦ଟଙ୍କା ଜୋରିମାନା (ମାଲବାହୀ)।
- ଆଇନ୍‌କୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଅବମାନନା କଲେ ଜୋରିମାନା ୨ଗୁଣା ହେବ।

୭. ଜାତୀୟ ରାଜପଥ ଅଧିକାରୀ ଓ ସୁରକ୍ଷା ବଳ ଏକ ନୂଆ ଶାଖା ଆରମ୍ଭ କରିବାକୁ ଯାଉଛନ୍ତି। ଏହା ପୋଲିସ ଫୋର୍ସ ସଙ୍ଗେ ସମାନ, ଏହି ସୁରକ୍ଷାବଳ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ଅନୁଧ୍ୟାନ କରିବା ସହ ରାସ୍ତା ଦୁର୍ଘଟଣାକୁ ତଦାରଖ କରିବେ।

୮. ସାମାଜିକ ସେବାକ୍ଷେତ୍ରରେ ମିଳିତ ଭାବେ ଧାର୍ଯ୍ୟ ଦଣ୍ଡବ୍ୟବସ୍ଥା :-

- ଭୁଲ୍ ରାସ୍ତାରେ ଏବଂ ଆବଶ୍ୟକତାଠାରୁ ଅତ୍ୟଧିକ ବେଗରେ ଗାଡି ଚଲାଇଲେ ତାଙ୍କର ଫଟୋ ଇଂରାଜୀ ଓ ଆଞ୍ଚଳିକ ଭାଷାରେ ଲୋକାଲ ଗଣମାଧ୍ୟମରେ ପ୍ରକାଶ ହେବ।
- ଟୋଲ ପ୍ଲାଜା ଗୁଡ଼ିକରେ ବ୍ୟବହାର ଖରାପକଲେ ଦଣ୍ଡ ଭୋଗିବାକୁ ହେବ।
- ମଟର ଯାନର କାଗଜପତ୍ର (ପ୍ରମାଣ) ଭିତ୍ତିରେ ଦଣ୍ଡବିଧାନ ହେବ।
- ଗାଡି ଗୁଡ଼ିକର ଓଭର ଲୋଡ ଯାଞ୍ଚ ପ୍ରକ୍ରିୟାରେ ଟୋଲ ପ୍ଲାଜାର କର୍ମଚାରୀ ରହିବେ।
- ୧୨ଥର ଆଇନ୍ ଉଲଘଂନ କଲେ ୧ବର୍ଷ ପର୍ଯ୍ୟନ୍ତ ଲାଇସେନ୍‌ସ ରଦ୍ଦ ହେବ।
- ୨୪ ଥର ଆଇନ୍ ଉଲଘଂନ କଲେ ୫ବର୍ଷ ପର୍ଯ୍ୟନ୍ତ ଲାଇସେନ୍‌ସ ରଦ୍ଦ ହେବ।

ଲର୍ଣ୍ଣୀ ଲାଇସେନ୍‌ସ ପ୍ରାପ୍ତ ବ୍ୟକ୍ତି ୪ଥର ଆଇନ୍ ଉଲଘଂନ କଲେ ଲାଇସେନ୍‌ସ କ୍ୟାନସେଲ କରାଯିବ।

୯. ୬ରୁ ୧୨ ସିଟ୍ ବିଶିଷ୍ଟ ଗାଡ଼ି ଗୁଡ଼ିକୁ ୧୨୫ କିମି. ପର୍ଯ୍ୟନ୍ତ ହିଁ ପରିମିଟ୍ ମିଳିବ। ଏହି ନିଷ୍ପତି ଫଳରେ କେନ୍ଦ୍ରିୟ (ଜାତୀୟ) ପରିବହନ ଅଧିକାରୀ ବସ୍ ସେବାକୁ ସଂଙ୍କୁଚିତ କରିଛନ୍ତି।

୧୦. ଜାତୀୟ ପରିବହନ ଅଧିକାରୀ ପଦବୀ ହେବା ଫଳରେ, ଜାତୀୟ ପରିବହନ ଅଧିକାରୀ ରାଜ୍ୟ ସରକାରଙ୍କ କ୍ଷମତାକୁ ରଦ୍ଦ କରିବାକୁ ଯାଉଛନ୍ତି । ନୀତି ନିର୍ଦ୍ଧାରଣ କ୍ଷେତ୍ରରେ ସ୍ୱାଧୀନଭାବେ ପରିବହନ ଅଧିକାରୀ ନିଷ୍ପତି ନେବେ। ସରକାର କୌଣସି ଜରୁରୀ ପରିବର୍ତ୍ତନ ଆଣିବାକୁ ଚାହିଁଲେ, ପରିବହନ ଅଧିକାରୀଙ୍କ ଅନୁମୋଦନ ଆବଶ୍ୟକତା, ଯାହାକି ବୁଲେଇ ବାଲେଇ ପରିବହନ ବିଭାଗ ଓ ଏହାର କ୍ଷମତାକୁ କର୍ପୋରେଟ ସଂସ୍ଥା ହାତକୁ ଅର୍ପଣ କରାଯାଉଛି।

୧୧. ମଟର ଯାନ ଉପରେ ସରକାରଙ୍କର କୌଣସି ଅଧିକାର ରହିବ ନାହିଁ। ସମସ୍ତ ମଟର ଯାନ ଓ ଏହା ସଂପର୍କୀତ ଯଥା- ଚାଲଣ, ଜୋରିମାନା ଇତ୍ୟାଦି ଏକ ବୈଦ୍ୟୁତିକ ଧାରାରେ ପରିଗଣିତ ହେବ। ତାହା ଦେଶତମାମ ଗୋଟିଏ ଧାରାରେ କାର୍ଯ୍ୟକାରୀ ହେବ।

୧୨. ସାମ୍ବିଧାନିକ ଧାରାମୁତାବକ ସ୍ପଷ୍ଟ ଜଣାଯାଉଛି ଯେ କେନ୍ଦ୍ର ଶାସିତ ସରକାରୀ କାର୍ଯ୍ୟରେ ନିୟୋଜିତ ବ୍ୟକ୍ତି ପରିବହନ ବିଭାଗର ନିୟମକୁ ପରିବର୍ତ୍ତନ କରିପାରିବେ ନାହିଁ। କାରଣ:-

କ) "ମଟର ଯାନ ନିୟନ୍ତ୍ରଣ ଆଇନ୍" ଗୁଡ଼ିକ ଭାରତୀୟ ସଂବିଧାନ ଭାଗ- ୩ର ପାରା ୩୫ରେ ଆଲୋଚନା କରାଯାଇଛି।

ଖ) Part-3ରେ କେନ୍ଦ୍ର ରାଜ୍ୟ ମଧ୍ୟରେ ସଂପର୍କ ଗୁଡ଼ିକ P-11ର Sec-52 ରେ ସ୍ଥାନ ପାଇଛି। ପାର୍ଟି ଗୁଡ଼ିକର କ୍ଷମତା ସଂପର୍କରେ ସ୍ୱତନ୍ତ୍ର ସ୍ଥାନ ପାଇଛି। କ୍ଷମତା ଗୁଡ଼ିକୁ ୩ ଭାଗରେ ବିଭକ୍ତ କରାଯାଇଛି ଯଥା-କେନ୍ଦ୍ର, ରାଜ୍ୟ ଏବଂ ଆଞ୍ଚଳିକ। ଏହା ଆମେରିକା, ଅଷ୍ଟ୍ରେଲିଆ ଏବଂ ସିଙ୍ଗାପୁରର ପ୍ରଚଳିତ ନିୟମର ଅଂଶ। କିନ୍ତୁ ବର୍ତ୍ତମାନର ବିଲ୍‌ଟି ଉକ୍ତ ଧାରାରେ ପ୍ରଚଳିତ ନିୟମର ଅବିକଳ ନକଲ, ଯାହାକି ସଂବିଧାନ ବିରୋଧି।

ଗ) ଲୋକାଲ ବଡି ଗୁଡ଼ିକ ସାଧାରଣ ନିୟମ ଅନ୍ତର୍ଭୁକ୍ତ କିନ୍ତୁ ଏହା ସ୍ଥାୟୀ ନୁହେଁ ବୋଲି ସଂକେତ କରୁଛି । ଏହାର କାରଣ ହେଉଛି ପରମିଟ୍ ଇସ୍ୟୁ, ଫିଟ୍‌ନେସ୍ ସାର୍ଟିଫିକେଟ୍ ଏବଂ ଅନ୍ୟ ସଂଗ୍ରାହକ ନିୟମ ଗୁଡ଼ିକ କେନ୍ଦ୍ର ସରକାରଙ୍କ ନିୟନ୍ତ୍ରଣାଧିନ ।

ଏଥିରୁ ସ୍ୱଷ୍ଟ ଜଣାପଡୁଛି ମୋଦି ସରକାର ସାଧାରଣ ଲୋକ ଏବଂ ପରିବହନ ବିଭାଗକୁ ବିପଦକୁ ଠେଲି ଦେଇ ଉଦ୍ଦେଶ୍ୟ ମୁଳକଭାବରେ ସଂବିଧାନରେ ପରିବର୍ତ୍ତନ କରିବାକୁ ଯାଉଛନ୍ତି ।

୧୩. ମଟର ଯାନ ନିୟମ ଏବଂ ଆଇନ୍‌କୁ ଛାଡିଦେଲାପରେ ଟ୍ରାନସ୍‌ପୋର୍ଟ କମିଟି ସମସ୍ତ ବର୍ଗର ମତାମତ ଗ୍ରହଣ କରନ୍ତି, ଯେଉଁମାନେ ପରିବହନ ଯାନ ଉପରେ ନିର୍ଭରଶୀଳ ଏବଂ ଆଇନ୍‌ର ପ୍ରସ୍ତୁତକର୍ତ୍ତା ।

୧୪. ରାଜ୍ୟ ପରିବହନ ସଂସ୍ଥା (ସଂଗଠନ) ଗୁଡ଼ିକୁ ଶକ୍ତିଶାଳୀ କରିବା ପାଇଁ ଭାରତ ସରକାର ଅର୍ନ୍ତଭୁକ୍ତ କରିବା ପାଇଁ ୧୯୭୭ମସିହା ସଂବିଧାନର ୯ମ ଧାରାକୁ ରିପୋର୍ଟରେ ପ୍ରଦାନ କରିଛନ୍ତି । ୨୦୧୫ ଆର.ଟି.ଏସ୍. ବିଲ୍ ଆସିବା ପୁର୍ବରୁ ବର୍ତ୍ତମାନ ସରକାର ଏହି ପ୍ରସ୍ତାବ ସବୁ ଆଣିଛନ୍ତି । ଯାହାକି ସଂବିଧାନ ବିରୋଧି ଅଟେ ।

୧୫. ରାଜ୍ୟ ପରିବହନ ସଂସ୍ଥାର ରିପୋର୍ଟ ଅନୁସାରେ ଆନ୍ଧ୍ରପ୍ରଦେଶ ବସ୍ ପଥ ଗୁଡ଼ିକ ରାଷ୍ଟ୍ରୀୟ କରଣ ଦ୍ୱାରା ଉପକୃତ । ଏକମାତ୍ର ରାଜ୍ୟ ଆନ୍ଧ୍ରପ୍ରଦେଶର ୯୫ ଭାଗ ପଥଗୁଡ଼ିକ ରାଷ୍ଟ୍ରୀୟକରଣ ହୋଇଛି । ଏହି ବିବୃତିରୁ ଜଣାପଡ଼ିଛି ଯେ ରାଜ୍ୟର ଉନ୍ନତିରେ ରାସ୍ତା ପରିବହନ ସଂସ୍ଥାର ପୁରାପୁରୀ ସହଯୋଗ ରହିଛି । ଅନ୍ୟ ରାଜ୍ୟର ପରିବହନ ସଂସ୍ଥାଗୁଡ଼ିକର ସମାନ ଅଭିଜ୍ଞତା ରହିଛି । କିନ୍ତୁ ଏବେର ସରକାର ଏହି ସଂସ୍ଥାଗୁଡ଼ିକୁ ନିଷ୍ଠୁରତାର ସହିତ ବନ୍ଦ କରିବା ପାଇଁ ଚେଷ୍ଟା କରୁଛି ।

# କାହିଁକି ଆମେ ଏହି ବିଲ୍‌କୁ ବିରୋଧ କରୁଛୁ ?

୪ ଜୁନ୍ ୨୦୧୫ ରେ ରାଜ୍ୟସରକାରଙ୍କୁ ରୋଡ୍ ପରିବହନ ସୁରକ୍ଷା ବିଲ୍ ନାମରେ ପ୍ରଦାନ କରାଯାଇଥିବା ବିଲ୍‌ଟି ବିଶ ଲଡୁ ସଦୃଶ।

## କଣ୍ଡକ୍ଟର ପରିଚୟକୁ ଲୋପକରା ଯାଇଛି :-

ଏହି ବିଲ୍‌ଟିରେ କଣ୍ଡକ୍ଟରମାନଙ୍କର ନାମ ଓ ସେମାନଙ୍କର ଲାଇସେନ୍‌ସ ରିନ୍ୟୁକୁ ଉଛେଦ କରାଯାଇଛି ଯାହାକି ୧୯୮୮ MV Actରେ କଣ୍ଡକ୍ଟର ମାନଙ୍କ ପାଇଁ ଥିଲା। ଏହି ବିଲ୍‌ରେ କଣ୍ଡକ୍ଟର ମାନଙ୍କ ସପକ୍ଷରେ କୌଣସି କଥା ଉଲ୍ଲେଖ କରାଯାଇ ନାହିଁ କି ଲାଇସେନ୍‌ସ ରିନ୍ୟୁଆଲ୍ ପାଇଁ କୁହାଯାଇ ନାହିଁ। ଯାହା ଫଳରେ ନିକଟ ଭବିଷ୍ୟତରେ ୩ ଲକ୍ଷ କଣ୍ଡକ୍ଟର ସେମାନଙ୍କର କାର୍ଯ୍ୟ ହରାଇବେ। ଏଭଳି ନିଷ୍ପତି ଦେଶରେ ବେକାରୀ ମାନଙ୍କର ଏକ ବିସ୍ଫୋରଣ ସୃଷ୍ଟି କରିବ।

## ସରକାରୀ ପରିବହନ ଲୋପହେବ:-

୨୦୧୫ ରୋଡ୍ ଏବଂ ପରିବହନ ସୁରକ୍ଷା ବିଲ୍ ରାଜ୍ୟ ପରିବହନ କର୍ପୋରେସନକୁ ଦିନକୁ ଦିନ ସଂକୁଚିତ କହିବା ସହ ଏହା ବେଶିଦିନ ତିଷ୍ଠି ପାରିବ ନାହିଁ। ଟ୍ରାନସ୍‌ପୋର୍ଟ କର୍ପୋରେସନର ଭୂମିକାକୁ ଏହି ବିଲ୍‌ରେ ସଂପୂର୍ଣ୍ଣ ବାଦ୍ ଦିଆ ହୋଉଛି।

ସରକାର ଗାଡ଼ିର ଭଡା (ଦର)କୁ ନିୟନ୍ତଣ କରିବେ ନାହିଁ, ବର୍ତ୍ତମାନ ଯାହା କରୁଛନ୍ତି। ରାଜ୍ୟ ଗୁଡିକ ମଧ୍ୟରେ ଯେଉଁ ଚୁକ୍ତି ହେଉଥିଲା ତାହା ହୋଇପାରିବ ନାହିଁ। ଅସ୍ଥାୟୀ ପରମିଟ୍, ସ୍ୱତନ୍ତ୍ର ପରମିଟ୍ ଗୁଡ଼ିକ ପାଇଁ କୌଣସି ସ୍ୱତନ୍ତ୍ରତା ନାହିଁ। ଆନ୍ତଃରାଜ୍ୟ କଥା ଏଥିରେ ଉଲ୍ଲେଖ ନାହିଁ। ସ୍ୱାଧିନତା ସଂଗ୍ରାମୀ, ବରିଷ୍ଠ ନାଗରିକ, ଶାରୀରିକ ଭିନ୍ନକ୍ଷମ, ସାମ୍ବାଦିକ ଏବଂ ଲୋକ ପ୍ରତିନିଧି ମାନଙ୍କୁ ରିହାତି ପ୍ରଦାନ କ୍ଷେତ୍ରରେ ସଂପର୍କରେ ଉଲ୍ଲେଖ ନାହିଁ।

ଦୁର୍ଘଟଣା ବିଭିନ୍ନ କାରଣରୁ ହୋଇଥାଏ- ଡ୍ରାଇଭର ମାନେ କାହିଁକି ସମସ୍ତ କଥା ପାଇଁ ଦାୟୀ ରହିବେ- ?

ଏହି ନୂଆ RTS ବିଲ୍‌ରେ ଦୁର୍ଘଟଣା ପାଇଁ ଦାୟି କେବଳ ଗାଡିର ଚାଳକ ଏବଂ ଏଥିପାଇଁ ୧ଲକ୍ଷରୁ ୩ଲକ୍ଷ ଜୋରିମାନା ସହ ଜେଲଦଣ୍ଡ ଭୋଗିବାକୁ ହେବ।

ସର୍ଭେ ରିପୋର୍ଟ ଏବଂ ଅନୁଧ୍ୟାନରୁ ଜଣାଯାଇଛି ଯେ ବଡ଼ଧରଣର ଦୁର୍ଘଟଣା ଠାରୁ ଆରମ୍ଭ କରି ପ୍ରତି ମିନିଟ୍‌ରେ ଦୁର୍ଘଟଣା ଘଟୁଛି। ପ୍ରତିଘଣ୍ଟାରେ ରୋଡ ଦୁର୍ଘଟଣାରେ

ଘଣ୍ଟାପ୍ରତି ୧୬ଜଣ ଲୋକ ପ୍ରାଣ ହରାଉଛନ୍ତି । ପ୍ରତିଦିନ ୧୨୧୪ ରୋଡ ଦୁର୍ଘଟଣା ସହ ୩୭୭ ଦୁର୍ଘଟଣାକୁ ରେକର୍ଡ କରାଯାଉଛି । ୨୦୦୮ରୁ ୨୦୧୨ ମଧ୍ୟରେ ଘଟିଥିବା ଦୁର୍ଘଟଣାର ତାଲିକା ।

| ବର୍ଷ | ଦୁର୍ଘଟଣାର ସଂଖ୍ୟା | ମୃତ୍ୟୁ ସଂଖ୍ୟା | No. of injured |
|---|---|---|---|
| ୨୦୦୮ | ୪୮୪୭୦୪ | ୧୦୬୫୯୧ | ୫୨୩୧୯୩ |
| ୨୦୦୯ | ୪୮୬୩୮୪ | ୧୧୦୯୯୩ | ୫୧୫୪୫୮ |
| ୨୦୧୦ | ୪୯୯୬୨୮ | ୧୩୪୫୧୩ | ୬୩୪୧୪୧ |
| ୨୦୧୧ | ୪୯୩୬୮୬ | ୧୮୨୪୮୫ | ୫୧୧୩୯୪ |
| ୨୦୧୨ | ୪୯୦୩୮୩ | ୧୨୩୦୯୩ | ୫୦୯୬୬୭ |

## ଦୁର୍ଘଟଣା ଉପରେ ବୁଦ୍ଧିଜିବୀଙ୍କର ମତାମତ:-

୧. ଦେଶରେ ୧୮୪୩୫ଟି ପରିବହନ କଂପାନୀ ତାଙ୍କର ଲାଭ ପାଇଁ ଦୈନିକ ଶ୍ରମିକ ମାନଙ୍କୁ ୧୨ରୁ ୧୫ ଘଣ୍ଟା ପର୍ଯ୍ୟନ୍ତ କାମରେ ଲଗାଇ ଥାଆନ୍ତି । ଅତ୍ୟଧିକ ପରିଶ୍ରମ ଫଳରେ ହାଲିଆହେବା ଦୁର୍ଘଟଣାର ମୁଳ କାରଣ । ଆମ ଦେଶରେ ୫୭୭୯୦ଟି ଟ୍ରାନସ୍‌ପୋର୍ଟ କମ୍ପାନୀ ଯେଉଁମାନେ କୌଣସି ରିପୋର୍ଟ ପ୍ରଦାନ କରନ୍ତି ନାହିଁ କାମର ସମୟ ସଂପର୍କରେ ଯାହାକି ମୋଟର ଭେହିକିଲ ଆଇନ୍‌ର ନିୟମର ଉଲଘଂନ ।

୨. ବର୍ତ୍ତମାନ ପରିସ୍ଥିତିରେ ଦେଶ ହେଲ୍‌ପର ଓ କ୍ଲିନର ମାନଙ୍କୁ ଭାରୀଯାନ ଚଳାଇବା ପାଇଁ ବାଧ କରାଯାଉଛି । ମାଲିକ ମାନେ ଟଙ୍କା ବଞ୍ଚାଇବା ପାଇଁ ଜଣେ ଅଭିଜ୍ଞପୁର୍ଣ୍ଣ ଚାଳକ ନିଯୁକ୍ତ ଦେଇ ଅନ୍ୟଶ୍ରମିକ ଦ୍ୱାରା କାର୍ଯ୍ୟ କରାଉଛନ୍ତି । ଅଭିଜ୍ଞତା ନଥାଇ ଲମ୍ବାରାସ୍ତାରେ ଗାଡି ଚଳାଇବା ଦ୍ୱାରା ଗାଡିଟି ଦୁର୍ଘଟଣାର ସମ୍ମୁଖୀନ ହେଉଛି । ଏହା ଦ୍ୱାରା ମାଲିକ କିମ୍ବା ଗାଡିର ବିଶେଷ କ୍ଷତି ହେଉନାହିଁ କାରଣ ସେମାନେ ବୀମା ବଳରେ ଅର୍ଥ ପାଉଛନ୍ତି । କିନ୍ତୁ ଚାଳକ ଏବଂ ସହାୟକମାନେ ଓ ଯାତ୍ରୀମାନେ ମୃତ୍ୟୁ ବରଣ କରୁଛନ୍ତି । ଯାହା ଫଳରେ ପରିବାରର ରୋଜଗାରକ୍ଷମ ବ୍ୟକ୍ତି ଉପାର୍ଜନର କ୍ଷମତା ହରାଉଛି ।

୩. ଚାଳକମାନେ ବାଧ୍ୟତା ମୁଳକଭାବେ ଶରୀରଉପରେ ଅଧିକ ଚାପଦେଇ ଗାଡି ଚଳାଉଛନ୍ତି । ଯାହାକି ମଣିଷ ଶରୀର ପାଇଁ କ୍ଷତିକାରକ । ଅତ୍ୟଧିକ ପରିଶ୍ରମ ଓ ବିଶ୍ରାମ ନନେବା ଫଳରେ ସେମାନେ ଗାଡିଉପରୁ ନିୟନ୍ତ୍ରଣ ହରାଉଛନ୍ତି । ହଠାତ୍

ବ୍ରେକମାରିବା ଫଳରେ ଗାଡିଟି ଦୁର୍ଘଟଣା ଗ୍ରସ୍ତ ହେଉଛି । ଏହି ଘଟଣାରେ ଡ୍ରାଇଭରଟି ଅସୁବିଧା ଅନୁଭବ ଅନ୍ୟମାନେ କରୁନାହାନ୍ତି । କାରଣ ଦିନଭିତରେ ଆବଶ୍ୟକତାଠାରୁ ସେ ଅଧିକା କାମ କରୁଛନ୍ତି । ସେଠାରେ କାମ କରିବାର କୌଣସି ନିର୍ଦ୍ଦିଷ୍ଟ ସମୟ ସ୍ଥିର ହୋଇ ନାହିଁ କିମ୍ବା ଆଇନ୍ ମୁତାବକ କାମ କରିବାର ସମୟକୁ ଲଗ୍ ବୁକ୍‌ରେ ସ୍ଥାନ ଦିଆଯାଇ ନାହିଁ ।

୪. ମଟର ଯାନର ଟିକସ ଫାଙ୍କିବା ପାଇଁ ମାଲିକମାନେ ଭୁଲ୍ ରାସ୍ତାକୁ ଆପଣାଉଛନ୍ତି । ଡାଲାଗାଡି ଗୁଡ଼ିକୁ ଖରାପ ଟାୟାର ପକାଇ ଚଲାଉଛନ୍ତି । ଯାହା ପଡିବା କଥା ନୁହେଁ । ଅତ୍ୟଧିକ ଭଡା କରିବା ଫଳରେ ସଠିକ୍ ମେଣ୍ଟେନାସ୍ ନହେବା ଫଳରେ ଗାଡି ଦୁର୍ଘଟଣା ଗ୍ରସ୍ତ ହେଉଛି । କିନ୍ତୁ ସମସ୍ତ ଦୋଷ ଚାଳକ ଉପରକୁ ଆସୁଛି ।

୫. ଉତ୍ପାଦନକାରୀ କଂପାନୀ ଗାଡିଟିକୁ ବିକ୍ରି କରିବା ପରେ ତାର ଆବଶ୍ୟକ ଉପକରଣ ଉତ୍ପାଦନ ଠାରୁ ଅତ୍ୟଧିକ ମୂଲ୍ୟରେ ବଜାରରେ ବିକ୍ରି ହେଉଛି । ଯାହା ଫଳରେ ମାଲିକମାନେ ଶସ୍ତା ଉପକରଣ ଗାଡିରେ ଲଗାଉଛନ୍ତି । ଯାହାକି ଭଲକାମ କରିବା ପରିବର୍ତ୍ତେ ଯାନଟି ଦୁର୍ଘଟଣା ଗ୍ରସ୍ତ ହେଉଛି ।

୬. ଆମ ଦେଶରେ ଲୋକ ସଂଖ୍ୟାକୁ ଦୃଷ୍ଟିରେ ରଖି ରାସ୍ତା ଗୁଡ଼ିକ ୪ ରୁ ୬ ଲାଇନ ବିଶିଷ୍ଟ ହେବା କଥା ତାହା ହୋଇନାହିଁ ଯାହାକି ସେହିରାସ୍ତାରେ ଦ୍ରୁତ ଚାଳନା ସମ୍ଭବ ନୁହେଁ । ଏହି ଦୁର୍ଘଟଣା ଗୁଡ଼ିକ ଅନ୍ୟକୁ ସୁରକ୍ଷା ଦେବା, ଜୀବ ଜନ୍ତୁଙ୍କୁ ବା ରାସ୍ତାରେ ଯାଉଥିବା ଲୋକଙ୍କ ଯୋଗୁଁ ବିକାଶଶୀଳ ଦେଶ ଭଳି ଆମଦେଶରେ ରାସ୍ତା ପ୍ରଶସ୍ତିକରଣ, ବାଡଦେବା ଇତ୍ୟାଦି ହୋଇନାହିଁ । ସହରରେ ବା ଗ୍ରାମାଞ୍ଚଳରେ ଖରାପ ରାସ୍ତାହେତୁ ଦୁର୍ଘଟଣା ହେଉଛି କିନ୍ତୁ କାରଣ ନଥାଇ ଚାଳକର ଦାୟିତ୍ୱହିନତା ବୋଲି କୁହାଯାଉଛି ।

୭. ଅଧିକ ଲାଭ ପାଇବା ପାଇଁ ରାସ୍ତାର ଅବସ୍ଥାକୁ ଅନୁଧ୍ୟାନ ନକରି ଅତ୍ୟଧିକ ଜିନିଷ ଗାଡିରେ ଲଦିବା ଦ୍ୱାରା ଗାଡି ଉପରେ ଚାପ ପଡୁଛି ଏବଂ ଏଭଳି ଯୋଗୁ ଘଟୁଥିବା ଦୁର୍ଘଟଣାରେ ମଧ୍ୟ ଚାଳକକୁ ଦୋଷ ଦିଆଯାଉଛି ।

**କେନ୍ଦ୍ର ସରକାରଙ୍କ ତରଫରୁ ଆଗତ ଏହି ବିଲ୍, ପରିବହନ ଶ୍ରମିକ, ପରିବହନ ମାଲିକ ଓ ଯାତ୍ରୀ ମାନଙ୍କ ପାଇଁ ଫାଶି ଦଉଡି । ଏହାକୁ ପ୍ରତ୍ୟାଖାନ କରନ୍ତୁ ଓ ନିଜର ଜୀବନ ତଥା ଅଧିକାରକୁ ସାବ୍ୟସ୍ତ କରନ୍ତୁ ।**

●●●

